# ଅନ୍ୟ ଏକ ନୀଳାଚଳ

## ଜଙ୍ଘାଦେବ

ରଚନା ଡକ୍ଟର କୃତ୍ତିବାସ ନାୟକ
ତଥ୍ୟ ସଂଗ୍ରହ ଶ୍ରୀ ରଘୁନନ୍ଦନ ଲାକ୍ରା

ANYA EKA NEELACHAL :
JANGHADEV

Author DR. KRUTTIBAS NAYAK
Asst. by Sri Raghunandan Lakra
Publisher ARUN-TARUN
Akashvani Road, Jagda
Raurkela - 769 042
1st Edition January 2000
Price

# और एक नीलाचल

श्रीजगन्नाथ ओड़िया जाति के इष्टदेव हैं और प्रत्येक ओड़िया की आत्मा जगन्नाथ संस्कृति से ओतप्रोत है। श्रीजगन्नाथ का उपासना - प्रकरण तथा उसकी सांस्कृतिक अंतर्कथा न केवल ओड़िया को पुलकित करते हैं, बल्कि करोड़ों धर्मात्माओं के हृदय में वैश्विक भ्रातृप्रेम पैदा करते हैं।

श्रीमंदिर में तीन अनगढ़ और अधूरी मूर्तियों का अवलोकन कर आखें आसुओं से छलछलाती हैं और मन और प्राण सहज ही संवेदित हो जाते हैं। यदि एक सामान्य मनुष्य की तरह इनके हाथ-पांव भी होते तो सचमुच कितने सुन्दर होते!

दुनिया में जाने कितने मंदिर हैं जहाँ अज्ञात काल से श्रीजगन्नाथ जी का पूजन होता आ रहा है। पुरी के श्रीमंदिर में प्रचलित उपासना पद्धति का अनुसरण लगभग सर्वत्र होता है। कहीं व्यतिक्रम मिलता भी है तो मामूली है। ओड़िशा राज्य में ऐसा एक स्थान है जहां जगन्नाथ, बलभद्र और सुभद्रा जी की मूर्तियों के नीचले भाग का पूजन होता है। जांघ की पूजा होने के कारण वे जंघादेव के नाम से जाने जाते हैं। जंघादेव, बडेदेव और लिंगादेव के नाम से पूजित इन तीन मूर्त्तियोंके सृजन की चमत्कारिक कथाओं ने जगन्नाथ संस्कृति को संपुष्ट किया है। यह कथा प्रत्येक अनुसंधाता के हृदय को भी छू जाती है।

"और एक नीलाचल" शीर्षक प्रस्तुत रेडिओ रूपक में उक्त कथा को अभिव्यक्त और संप्रेषित करने का एक विनम्र प्रायास किया गया है।



# ANYA EKA NILACHAL
# (LORD JAGANNATH IN DISGUISE)

Sri Jagannath is the passionate God of the Oriyas. The Jagannath culture is the soul of the people of Orissa. The incarnation of Lord Jagannath as well as the cult of Jagannath culture not only provide a feeling of endless joy in the hearts of Oriyas but also inculcates the spirit of brotherhood of man in the heart of crores of religions men and women.

The devotees get disheartened when they behold half made three deities in the Jagannath temple. They take compassion towards their Lords intentionally. What beautiful they would have been if they would have full figures like ours ! They are so many Gods in so many temples around the world being worshipped in the systems like the temple of Lord Jagannath. People notice some exceptions some where but there is place in Orissa where the bottom limbs of Jagannath, Balabhadra and Subhadra are worshipped. When Lord Jagannath is worshipped in the shape of a thy He is called Janghadev. The episode of the incarnation of the Three Gods in the names of Janghadev, Baddev and Linghadev has made the Jagannath culture more wonderful. This will bring a new light in the life of each and every religious Scholar. This will be humble endeavour of "Lord Jagannath in Disguise" or "ANYA EKA NILACHAL".



# ଅନ୍ୟ ଏକ ନୀଳାଚଳ

## ଡକ୍ଟର କୃତ୍ତିବାସ ନାୟକ

ଶ୍ରୀ ଜଗନ୍ନାଥ ହେଉଛନ୍ତି – ଓଡିଆ ଜାତିର ଇଷ୍ଟ ଦେବତା । ଜଗନ୍ନାଥ ସଂସ୍କୃତି ହେଉଛି – ଓଡ଼ିଆ ଜାତିର ଆତ୍ମା । ଶ୍ରୀଜଗନ୍ନାଥଙ୍କର ସୃଷ୍ଟିତତ୍ତ୍ୱ ଏବଂ ଜଗନ୍ନାଥ ସଂସ୍କୃତିର ଅନ୍ତଃସ୍ୱର କେବଳ ଓଡ଼ିଆ ଜାତିର ପ୍ରାଣରେ ପୁଲକ ଜଗାଏ ନାହିଁ, ବରଂ କୋଟି କୋଟି ଧର୍ମାତ୍ମାର ହୃଦୟରେ ବିଶ୍ୱ ଭ୍ରାତୃପ୍ରେମ ଜାଗ୍ରତ କରିଥାଏ ।

ଶ୍ରୀମନ୍ଦିରରେ ଦିଅଁଙ୍କର ଅଧାଗଢ଼ା ତିନିମୂର୍ତ୍ତିଙ୍କୁ ଦେଖି ଭକ୍ତର ହୃଦୟ ତରଳିଯାଏ । ଅଜାଣତରେ ସେ ତା'ର ପ୍ରଭୁ ପ୍ରତି ସହାନୁଭୂତିଶୀଳ ହୋଇଉଠେ । ଆମରି ପରି ପ୍ରଭୁଙ୍କର ହାତ–ଗୋଡ଼ ଥିଲେ, କି' ସୁନ୍ଦର ହୋଇଥାନ୍ତା ସତେ! ଶ୍ରୀମନ୍ଦିରର ଅନୁରୂପ ନୀତି ନିୟମରେ ବନ୍ଧା ଅସଂଖ୍ୟ ମନ୍ଦିରରେ ଅନେକ ଦିଅଁ, ସମଗ୍ର ବିଶ୍ୱରେ ପୂଜା ପାଇ ଆସୁଛନ୍ତି । ତେବେ କେଉଁଠି କେମିତି ସାମାନ୍ୟ ବ୍ୟତିକ୍ରମ ପରିଲକ୍ଷିତ ହୁଏ ସତ; କିନ୍ତୁ ଓଡିଶା ମାଟିରେ ଏଭଳି ଏକ ସ୍ଥାନ ଅଛି – ଯେଉଁଠି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର କେବଳ ନିମ୍ନାଙ୍ଗ ପୂଜାପାଏ । ଜଂଘ ରୂପରେ ଏହି ଦିଅଁଙ୍କର ପୂଜା ହେଉଥିବାରୁ ସେ ଜଂଘାଦେବ ଭାବେ ପରିଚିତ । ଜଂଘାଦେବ, ବଡ଼ଦେବ ଓ ଲିଙ୍ଗାଦେବ ଭାବେ ପୂଜିତ ଏହି ତିନିମୂର୍ତ୍ତିଙ୍କର ସୃଷ୍ଟି ରହସ୍ୟ, ଜଗନ୍ନାଥ ସଂସ୍କୃତିକୁ କରି ପାରିଛି – ଆହୁରି ପୁଷ୍କଳ । ଯାହାକି ପ୍ରତ୍ୟେକ ଅନୁସନ୍ଧିତ୍ସୁ ପ୍ରାଣରେ ଆଣିଦେବ – ଏକ ନୂତନ ସ୍ପର୍ଶ ।

ଏହା ହିଁ **"ଅନ୍ୟ ଏକ ନୀଳାଚଳ"** ରୂପକରେ ଆମର ବିନମ୍ର ପ୍ରଚେଷ୍ଟା ।



# ଅନ୍ୟ ଏକ ନୀଳାଚଳ

ବର୍ଣ୍ଣନା:–

- ଯୁଗ ଯୁଗ ଧରି, ମଣିଷକୁ ବଞ୍ଚିବାର ରାହା ଦେଖାଇ ଆସିଛି– ଲୋକ ବିଶ୍ୱାସ।
- ଆଉ ଅସହାୟ ପ୍ରାଣରେ ସାହସ ସଂଚାର କରି ଆସିଛି– ଈଶ୍ୱର ବିଶ୍ୱାସ।
- ତା' ଦୃଷ୍ଟିରେ ପାଷାଣ ହୋଇ ଉଠେ–ପରମ ଇଷ୍ଟ ଦେବତା, ତ୍ରାଣକର୍ତ୍ତା ଏବଂ ସଂସ୍କୃତିର ପ୍ରାଣବିନ୍ଦୁ।
- ମଣିଷ ହାତ ଗଢ଼ା ମୃଣ୍ମୟ ମୂର୍ତ୍ତି ଏବଂ ଦାରୁ ମୂର୍ତ୍ତି ହୋଇଯାଏ, ତା' ପାଇଁ ପରମେଶ୍ୱର।
- ସେଇଥି ପାଇଁ କୁହାଯାଇଛି, – 'ବିଶ୍ୱାସେ ମିଳଇ ହରି, ତର୍କେ ବହୁଦୂର।"
- ଏହି ବିଶ୍ୱାସକୁ ନେଇ ମଣିଷ ନିଜର ସଂସ୍କୃତିକୁ କରିଛି– ଋଦ୍ଧିମନ୍ତ।
- ଜୀବନକୁ କରିଛି, ରସମୟ ଏବଂ ସମାଜକୁ କରିଛି–ଶୃଙ୍ଖଳିତ।
- ଜଗନ୍ନାଥ–ସଂସ୍କୃତିକୁ ନେଇ ଉତ୍କଳ ଭୂମି ଗର୍ବ କରେ।

- ମହାପ୍ରଭୁଙ୍କ ସୃଷ୍ଟି ତଥା ଶ୍ରୀମନ୍ଦିର ପ୍ରତିଷ୍ଠା ସଂପର୍କରେ ଅସଂଖ୍ୟ କିମ୍ବଦନ୍ତୀ ରସାଳ କରିଛି—ଜଗନ୍ନାଥ ସଂସ୍କୃତିକୁ।
- ଅନେକ କାହାଣୀର ଅବତାରଣା କରାଯାଇଛି, ଅଧାଗଢ଼ା ତିନି ମୂର୍ତ୍ତିଙ୍କୁ ନେଇ।

ଗୀତ: ଦ୍ୱାପର ଯୁଗର – ବିଲୟ ବେଳକୁ –
କଳା କାହ୍ନୁ ଚକ୍ରପାଣି,
ଶିଆଳି ଲତାରେ – ଜାରା ଧନୁ ତୀରେ –
ଜୀବନ ତେଜିଲେ ଜାଣି।
ସେ ଜଡ଼ ଶରୀର – ନେଇ ମହାବୀର –
ପାଣ୍ଡବେ ସଂସ୍କାର କଲେ,
ଅବଶେଷ ବ୍ରହ୍ମ – ନାଭିପଦ୍ମ ନେଇ –
ସାଗରେ ବିସର୍ଜି ଦେଲେ।
ସେହି ନାଭି ପଦ୍ମ – ପାଇ ବିଶ୍ୱାବସୁ –
ପୂଜୁଥିଲା ନିରିଜନେ,
ଇନ୍ଦ୍ରଦ୍ୟୁମ୍ନ ରାଜା – ବ୍ରହ୍ମକୁ ପ୍ରତିଷ୍ଠା –
କଲେ ନୀଳାଚଳ ଧାମେ।

ବର୍ଣ୍ଣନା :
- ବ୍ରହ୍ମ ପ୍ରତିଷ୍ଠା କାହାଣୀର ପରିସମାପ୍ତି ଏଇଠି ହୋଇ ନାହିଁ।
- କାହାଣୀ ଓ କିମ୍ବଦନ୍ତୀର ଅନ୍ତ ନାହିଁ।
- ଯୁଗେ ଯୁଗେ ତ ଭଗବାନ ଭକ୍ତର ଅଧୀନ।
- ବନବାସୀ ଜାରା ନିଜର ଅପରାଧ ପାଇଁ ନିଜକୁ କ୍ଷମା ଦେଇ ପାରୁ ନଥିଲା।

– ଭଗବାନ ଶ୍ରୀକୃଷ୍ଣଙ୍କ ଆଶ୍ୱାସନା ସତ୍ତ୍ୱେ ସେ ଥିଲା ମର୍ମାହତ।

– ପାଣ୍ଡବ ବୀର ଭୀମ, ବ୍ରହ୍ମକୁ ନେଇ ସାଗରରେ ବିସର୍ଜନ କଲେ ସତ; କିନ୍ତୁ ବନବାସୀ ଓ ଗିରିବାସୀ ନିଜ ପ୍ରଭୁଙ୍କ ଚିତା ଅବଶେଷରୁ ଗଣ୍ଠି ଅଂଶଟିକୁ ନେଇ ଅତି ଯତ୍ନରେ ସାଇତି ରଖିଲେ।

**ସାକ୍ଷାତକାର–ଶ୍ରୀ ନୀଳମଣି ନାଏକଙ୍କ ସହ :**

– ମୋର ନାଁ 'ନୀଳମଣି ନାଏକ, ଘର ଭୋଇପାଲି। ଗଣ୍ଡୱାନା ଅଞ୍ଚଳରେ ପ୍ରଥମେ ଗଣ୍ଡ ଲୋକମାନେ ବାସ କରୁଥିଲେ। ତାଙ୍କର ଶ୍ରେଷ୍ଠ ଥିଲେ ଜଗତ। ତାଙ୍କୁ ସ୍ୱପ୍ନରେ ନିର୍ଦ୍ଦେଶ ହୋଇଥିଲା ଯେ, "ମୁଁ ଏଠି ଅଛି, ନେଇକି ପୂଜା କର। ତୁମର କୁଳ ଭାଇମାନଙ୍କୁ ଆଣିକି ନିଅ ଏବଂ ପୂଜା କର।"

– ସେ ଗଲେ, ଆଉ ତାଙ୍କୁ ସେଠି ପୂଜା କରିକି ଆଣିଲେ। ସେଇ ଦିନଠୁଁ ସେମାନେ ପୂଜା କରୁଛନ୍ତି। ଆଉ ତାଙ୍କର ଷଡ଼ ବଂଶୀୟ ଯେଉଁମାନେ ଥିଲେ, ସେହିମାନଙ୍କୁ ନେଇ କରି ଆଣିଥିବାର ପ୍ରମାଣ ସ୍ୱରୂପ ତାଙ୍କର ଇଷ୍ଟ ଦେବତାମାନେ ବର୍ତ୍ତମାନ ମଧ ଦିଅଁ ପାଖରେ ପାର୍ଶ୍ୱ ଦେବତା ରୂପେ ପୂଜା ପାଉଛନ୍ତି।

**ଗୀତ:** ବନବାସୀ ଗିରିବାସୀ ଭକ୍ତ ଜନେ ମିଳି,
ପ୍ରଭୁଙ୍କ ଚିତାରୁ ଗଣ୍ଠି ଅଂଶ ନେଲେ ଟୋଳି।
ଦୁଇ ଖଣ୍ଡ ଶାଳ କାଠେ ଥାପି ଅବଶେଷ,
ଜଂଘ ରୂପେ ସଜାଇଲେ ପ୍ରଭୁଙ୍କର ବେଶ।
ନୀଳାଚଳେ ନାଭିପଦ୍ମ ପ୍ରଭୁ ଜଗନ୍ନାଥ,
ଗୁପତେ ରହିଲେ ଗଣ୍ଠି ବ୍ରହ୍ମ ଜଂଘ ରୂପ।
ପୂଜିଲେ ଗଣ୍ଠିକୁ ଯେଉଁ ବନବାସୀ ଭକ୍ତ,

| | |
|---|---|
| ଗଣ୍ଡ ସଂପ୍ରଦାୟ ଭାବେ | ହେଲେ ପରିଚିତ । |
| ସେ ଅଞ୍ଚଳ ପରିଚିତ | ହେଲା ଗଣ୍ଡୱାନା, |
| କେତେ କାଳ ପ୍ରଭୁଙ୍କର | ଉଡୁଥିଲା ବାନା । |
| ବିଧର୍ମୀର ଆକ୍ରମଣେ | ହୋଇ ଆତଙ୍କିତ, |
| ଉତ୍କଳ ଭୁବନେ ପ୍ରଭୁ | ହେଲେ ବିରାଜିତ । |
| ସୁନ୍ଦରଗଡ଼ର | ଭୋଇପାଲି ବନ ଭୂଇଁ, |
| ଗଣ୍ଡ ରାଜନଙ୍କ ସେବା | ନେଲେ ଆପଣେଇ । |

**ସାକ୍ଷାତକାର – ଶ୍ରୀ ଛବିଳ ସେଠ୍‌ଙ୍କ ସହ :**

– ମୁଁ ଛବିଳ ସେଠ୍ । ଆମ ଗାଁ ବଡ଼ଗାଁ । ଗଣ୍ଡ ସଂପ୍ରଦାୟର ଲୋକେ ଦାବି କରନ୍ତି ଯେ, ଇଏ ହେଉଛନ୍ତି ଦାରୁବ୍ରହ୍ମ । କେହି କେହି କହନ୍ତି, ନିଦାବ୍ରହ୍ମ । ତେବେ ଦୁଇ ଖଣ୍ଡ ପ୍ରାୟ ପାଞ୍ଚ ଫୁଟର ଗଛରେ ତିଆରି ଆଉ ଏହାର ଜଗନ୍ନାଥ ସଂସ୍କୃତି ସହିତ ଅଙ୍ଗାଙ୍ଗି ଜଡିତ ଥିବାର ଲକ୍ଷ୍ୟ କରାଯାଏ । ଆମ ଇଷ୍ଟ ଦେବତା ଜଗନ୍ନାଥଙ୍କର ପିଣ୍ଡରେ ଶ୍ରୀକୃଷ୍ଣଙ୍କର ବ୍ରହ୍ମ ଅଛି ବୋଲି ଆମର ବିଶ୍ୱାସ । ସେହିଭଳି ଶ୍ରୀକୃଷ୍ଣଙ୍କ ଗୋଡ଼ ଦୁଇଟି ଏହି ଜଂଘା ଦେବତା ଭାବରେ ପୂଜା ପାଆନ୍ତି । ସେଇଥି ପାଇଁ ତାଙ୍କୁ ଜଂଘା କୁହାଯାଉଛି ।

ଯେଉଁ କାଠ ଦୁଇଖଣ୍ଡ ଆମେ କହୁଛୁ, ଦାରୁ କହୁଛୁ, ସେ ଦାରୁ ଦେହରେ କଳା ପଥର ସଦୃଶ ଗୋଟିଏ ଜିନିଷ ଅଛି, ସେଇଟାକୁ ଗଣ୍ଡ ସଂପ୍ରଦାୟର ଲୋକମାନେ ଦାବି କରନ୍ତି ଯେ, ସେଇଟା ହେଉଛି ଶ୍ରୀକୃଷ୍ଣଙ୍କର ଅସ୍ଥି ମଜ୍ଜା । ଯାହା ହେଉ, କ'ଣ ଗୋଟାଏ ବିଶ୍ୱାସରେ ସେଇଟା ଅଛି ଏବଂ ଏ' ପର୍ଯ୍ୟନ୍ତ ମଧ୍ୟ ସେଇଟା ସେଇଥିରେ ରହିଛି । ଯେହେତୁ ଶ୍ରୀକୃଷ୍ଣଙ୍କର 'ଚିତା ଅଗ୍ନିରୁ ତାଙ୍କ ଗୋଡ଼ ଅଂଶ ବିଶେଷ ଆସିଛି, ସେଥି ପାଇଁ ସେ ଅଗ୍ନିକୁ ସହ୍ୟ କରି ପାରନ୍ତିନି

ବୋଲି ଏହି ସଂପ୍ରଦାୟର ଲୋକଙ୍କର ବିଶ୍ୱାସ। ତେଣୁ ତାଙ୍କୁ ଶାନ୍ତ ଶୀତଳ କରିବା ପାଇଁ ସବୁବେଳେ ଜଡ଼ା ତେଲ ତାଙ୍କ ଦେହରେ ଘଷୁଥାନ୍ତି; ଏବଂ ତାଙ୍କୁ ଅତି ସୁଖରେ ରଖିବା ପାଇଁ ସବୁବେଳେ ଶିଆଳି ଲତାର ଦୋଳିରେ ଝୁଲାଉଥା'ନ୍ତି।

**ସାକ୍ଷାତକାର ଶ୍ରୀ ନୀଳମଣି ନାଏକଙ୍କ ସହ :-**

ମୁସଲମାନ ଶାସନ କାଳରେ ଲିଙ୍ଗା ଦେବତାଙ୍କୁ ସେମାନେ ଅପହରଣ କରିକି ମକ୍କା ମଦିନା ନେଇ ଯାଇଥିବାର ପ୍ରମାଣ ମିଳେ। ତେଣୁ ସେ ଅଞ୍ଚଳରେ ସେ ନିର୍ବିଘ୍ନରେ ରହି ନପାରିବାରୁ ଫୁଲଝରରୁ କୁକୁର ଜଂଘା ରାସ୍ତା ଦେଇକି କୁକୁରଜଂଘାରେ କିଛି ଦିନ ରହିଲେ, ତାର ବାଦ୍ ଗାଙ୍ଗପୁର ଦେଇ ଏହି ଭୋଇପାଲି ଗ୍ରାମକୁ ଆସି ଏଠାରେ ଶତାଧିକ ବର୍ଷ ହେଲା, ସେ ପୂଜା ଖାଇ ଆସୁଛନ୍ତି।

**ବର୍ଣ୍ଣନା :-**

- ରାଉରକେଲାଠାରୁ ସୁନ୍ଦରଗଡ଼ ଯିବା ବାଟରେ ସତୁରି କିଲୋମିଟର ଦୂରରେ ପଡ଼େ ବଡ଼ଗାଁ।
- ବଡ଼ଗାଁ ବାଟଦେଇ ଦୁଇ କିଲୋମିଟର ବାମକୁ ଗଲେ- ଜଂଘାଦେବଙ୍କ ବିଜେସ୍ଥଳୀ - ଭୋଇପାଲି।
- ସଂପ୍ରତି ଭୋଇପାଲି ଗାଆଁ ମଝିରେ ଜଂଘାଦେବଙ୍କର ନାତିବୃହତ ମନ୍ଦିର ଅବସ୍ଥିତ।

**ସାକ୍ଷାତକାର - ଶ୍ରୀ ମିତ୍ରେଶ୍ୱର ନାଏକଙ୍କ ସହ :**

- ମୋର ନାମ ହେଉଛି, ମିତ୍ରେଶ୍ୱର ନାଏକ। ୧୯୬୪ ମସିହାରୁ ମୁଁ ଏହି ମହାପୁରୁଙ୍କୁ ସେବା କରି ଆସୁଛି। ତାଙ୍କର ପୂଜା ହେଉଛି- ସକାଳବେଳା ଫୁଲ, ଚନ୍ଦନ, ଘିଅ, ସିନ୍ଦୂର, କର୍ପୁର, ଗୁଗୁଳ, ଧୂପ-ଦୀପ, ଭୋଗ, ଫୁଲ ଏ'ସବୁ ଲାଗେ, ସଂଧ୍ୟାରେ ସାମାନ୍ୟ ଆଳତି ଲାଗେ। ବରଷକୁ ଥରେ ଏଠି ଅନ୍ନଭୋଗ ବାଲି ତୃତୀୟାରେ ହୁଏ।

ତାଙ୍କର ପୂଜା ହେଉଛି– **ଶ୍ଳୋକ :**

ଓଁ ଅଗ୍ନିକୁ ଭୂଦେବ କିସ୍ୱତ, ଦକ୍ଷିଣେ ମଧୁସୂଦନ, ପଶ୍ଚିମେ ବାୟୁ ବେୟୁତରେ ଗରୁଡ ଧ୍ୱଜ, ଐଶାନେ ଶ୍ରୀହରି ମଁଧ୍ୟେ ଗୋବିନ୍ଦ ଉର୍ଦ୍ଧ୍ୱରେ ଗିରିଧାରୀ ଅଙ୍ଗ ନ୍ୟାସ କରିବ, ଶପତ ତୀର୍ଥର ଜଳ ବଡ ଦେଓ ସ୍ୱାହାଃ ନମଃ, ଗନ୍ଧ ନମଃ, ପୁଷ୍ପ ନମଃ, ଦୀପ ନମଃ, ଧୂପ ନମଃ। କର୍ପୁର ଗୁଗୁଲମ ମିଶ୍ରିତଂ ସର୍ବ ଧୂପ ଧୀପାୟଂ ନିରାକାର, ନିରାବିଷ୍ଣୁ ଅନ୍ତର୍ଯାମୀ ଚତୁଃର୍ଦ୍ଧା ମୂରତି ପ୍ରଭୁ ଦୁଃଖଦୂର କର, ସଂସାର ସୁଖୀ ରଖ ପ୍ରଭୁ।

**ବର୍ଣ୍ଣନା :–**

– ଶ୍ରୀ ଜଗନ୍ନାଥ ମହାପ୍ରଭୁ, ବର୍ଷକୁ ଥରେ–ଗୁଣ୍ଡିଚା ଯାତ୍ରା କରି, ଭକ୍ତମାନଙ୍କ ଗହଣରେ ନିଜକୁ ହଜେଇ ଦିଅନ୍ତି; କିନ୍ତୁ......

**ସାକ୍ଷାତକାର – ଶ୍ରୀ ଛବିଲ ସେଠ୍ଙ୍କ ସହ :**

– ୟାଁଙ୍କର ରଥଯାତ୍ରା ଯଦିଓ ନାହିଁ, ତାଙ୍କ ପିଠରେ ବର୍ଷକୁ ଥରେ ଆମର ପୂଜା ଧ୍ୱଜା ଯାତ୍ରା ଏଇ ପୌଷ ଶୁକ୍ଳ ଦଶମୀ ଦିନ ହୁଏ। ଆଉ ବାର ମାସରେ ମଧ୍ୟ ତାଙ୍କର ଭ୍ରମଣଟା ରୁହେ। ଏପରିକି ଯେକୌଣସି ମାସରେ ଯେକୌଣସି ଦିନରେ ସେ ଭ୍ରମଣ କରନ୍ତି। ଏମିତିକି ମାସ ମାସ ଧରିକି ଭ୍ରମଣ କରନ୍ତି। ଏ' ଭ୍ରମଣ, ଯାହା କରନ୍ତି, କଣ କରନ୍ତି ଏଇଟା ଗୋଟେ କଥା ଉଠିପାରେ, ଯେ ଭ୍ରମଣ ସମୟରେ ତାଙ୍କୁ ଦୁଇଜଣ ଲୋକ ତାଙ୍କର ଭକ୍ତ କାନ୍ଧରେ ବୋହିଥାନ୍ତି। ଆଉ ସିଏ ଯେଉଁ ଆଡ଼କୁ ଟାଣିବେ ଏ' ଭକ୍ତ ଦୁଇଜଣ ସେ ଆଡ଼କୁ ଟାଣି ହୋଇକି ଯାଉଥିବେ। ତାଙ୍କ ପଛରେ ଶଙ୍ଖ, ଘଣ୍ଟ, କାହାଳୀ ବାଲା, ପୂଜକ ଏମାନେ ଦୌଡ଼ି ଦୌଡ଼ିକି ଯାଉଥିବେ। ଏ' ଦେବତାଙ୍କର ଏହା ଗୋଟିଏ ଜିନିଷ ଯେ ସେ ଚାଲି ଚାଲି ଯାଆନ୍ତିନି। ସେ ଦୌଡ଼ିଂ ଦୌଡ଼ି ଯାଆନ୍ତି ଏବଂ ସିଧା ଯାଆନ୍ତି। ସେ ପାଣି ପଡୁ କି' ବିଲ ପଡୁ

କି ପକ୍କା ସଡ଼କ ପଡୁ; କି ବାଟଚଲା ପଡୁ। ସେ ଯୋଉ ଆଡ଼କୁ ଚାହିଁବେ, ସେଆଡ଼କୁ ଯିବାକୁ ପଡ଼େ। ସେ ଯାହା ଘରକୁ ଯିବେ, ସେ ପୂଜା ଧ୍ୱଜା କରେ ଏବଂ ତାର ମାନସିକ ଯାହା ତାକୁ ଜଣାଏ। ପ୍ରାର୍ଥନା କରେ, ଭୋଗ ରାଗ ଦିଏ। ଏହି ଭଳି ବୁଲି ବୁଲି ବିଭିନ୍ନ ଅଞ୍ଚଳ ଏପରିକି ଆମ ସୁନ୍ଦରଗଡ଼ ଜିଲ୍ଲା ଖାଲି ନୁହେଁ, ସୁନ୍ଦରଗଡ଼ ଜିଲ୍ଲା ବାହାରକୁ ମଧ ଯାଆନ୍ତି। ମଧ୍ୟପ୍ରଦେଶକୁ ଯାଆନ୍ତି। ଇଆଡ଼େ ସମ୍ବଲପୁର ଜିଲ୍ଲାକୁ ଯାଆନ୍ତି। ସବୁ ଆଡ଼େ ବୁଲିକି ପୁଣି ଆସୁଥାଆନ୍ତି। କେତେବେଳେ ଇଚ୍ଛା ହେଲେ ଯାଆନ୍ତି। କେବଳ ଆମ ପୁରୀ ଶ୍ରୀକ୍ଷେତ୍ରକୁ ତାଙ୍କୁ ଯିବା ପାଇଁ ମନା। ତା'ର କାରଣ ହେଉଛି – ଯେ, ଜଗନ୍ନାଥଙ୍କର ଇଏ ଅଂଶ ବିଶେଷ ହୋଇଥିବାରୁ ସେ କାଳେ ସେଠିକି ଗଲେ, ଉଭୟେ ଏକାକାର ହୋଇଯିବେ। ବୋଧହୁଏ, ସେଥିପାଇଁ ସେଠିକି ସେ ଯିବା ପାଇଁ ନିଷେଧ କରିଛନ୍ତି। ଏଇଟା ଲୋକେ ଯାହା କହନ୍ତି। ଜଗନ୍ନାଥଙ୍କ ସହିତ ତାଙ୍କର ସଂପର୍କ ଖୁବ୍ ନିବିଡ଼। କେଉଁଠି ଯଦି ସେ ଜଗନ୍ନାଥ ମନ୍ଦିର ପାଖରେ ଯାଉଥିବେ, ତାହେଲେ ବଡ଼ ବିଚିତ୍ର କଥା ଯେ, ଦୁଇ ଜଣ ବୋହିଥିବେ, ଜଙ୍ଘା ଦେବତାଙ୍କୁ ତା'ର ଯେଉଁ ଅଗ୍ର ଅଂଶ ମିଳିତ ହୋଇଯାଇ, ଯେତେ ଅଣ ଓସାରିଆ ଦ୍ୱାର ଥାଉ ନା' କାହିଁକି ଜଗନ୍ନାଥ ମନ୍ଦିରକୁ ପଶି ଯାଆନ୍ତି। ପଶି ଯିବା ପାଇଁ ଉଦ୍ୟତ ହୁଅନ୍ତି, କେବେ କେବେ ପଶି ଯାଆନ୍ତି ମଧ୍ୟ। ଆମ ବଡ଼ଗାଁର ଜଗନ୍ନାଥ ମନ୍ଦିରକୁ ପଶିଛନ୍ତି – ଅନେକ ଥର; କିନ୍ତୁ ଶ୍ରୀକ୍ଷେତ୍ରକୁ ଯାଆନ୍ତିନି।

**ସାକ୍ଷାତକାର – ଶ୍ରୀ ଲଳିନ୍ଦ୍ର ଭିତିରିଆଙ୍କ ସହ :**

– ଆଜ୍ଞା! ମୋର ନାଁ ହେଉଛେ – ଲଳିନ୍ଦ୍ର ଭିତିରିଆ। ମୁଁ ଏ' ଜଂଘା ଦେବତା ସାଙ୍ଗରେ ଯାଏଁ, ବହୁତ ଦୂର ମୁଇଁ ବୁଲିଛେଁ। କାହିଁ ସେ ବିହାର ବୋଡ଼ର ପାଖତକ ଯାଇଛେ। ଚାଲି ଚାଲି ଯେତେବେଳେ

ଯିବେ ଆଜ୍ଞା, ଆପଣ ବୁହିଥିବାଟା, ଦୁଇ ଜଣ ତ ବୁହିବେ, ବେଶି ଏନ୍ତା ଥକା ନି ଲାଗେ କି ଓଜନ ନି ଲାଗେ। ସେଟା ଆଉ ସେ ତା'ର ମନେ ମନେ ଆପଣଙ୍କୁ ନେଇଯିବା। ଆପଣ ଯେତେବେଳେ ବୁହିକି ଯିବେ, ସେ ଆଉ କିଛି ନି, ସେ ଯେନ୍ ବାଟେ ନେବା ଆପଣ ସେ ବାଟେ ପଲାବେ। ବନ୍ଧ ଆଉ କି କଣ୍ଟା ଆଉ ନଏଦ ନଲା ଆଉ ସବୁ ସମାନ୍ ଆଜ୍ଞା। ସେ ଯେନ୍ ବାଟେ ନେବା ସେ ବାଟେ ଯିବେ। ମୁଇଁ ଏଇ ବାଟେ ତା'କେ ନେଇଯିମି ଇ କଥା ନି ହୁଏ। ସେ ବାଟେ ନେଇନି ହୁଏ ଆଜ୍ଞା।

**ସାକ୍ଷାତକାର – ଶ୍ରୀ ମିତ୍ରେଶ୍ୱର ନାଏକଙ୍କ ସହ :**

– ଯେଉଁ ଗାଁରେ ଯେଉଁ ବିପଦ ଥାଏ, ଗାଁ ନଶିଥାଏ କିମ୍ବା ଘର ଦ୍ୱାର ନଶିଥାଏ କିମ୍ବା ଗାଇ ଗୋରୁ ନଶିଥାଏ, ତା'ହେଲେ ଆମ ମହାପୁରୁକୁ ବରଣ କରି ନିଅନ୍ତି। ସିଏ ବରଣ କଲେ, ଆମ ସମାଜରେ ଗୋଟିଏ ଦରଖାସ୍ତ ଲାଗେ। ପୂଜା କମିଟି ପାସ୍ କଲେ, ମହାପୁରୁ ଯାଆନ୍ତି।

**ସାକ୍ଷାତକାର – ଶ୍ରୀ ନୀଳମଣି ନାଏକଙ୍କ ସହ :**

ଯେଉଁଠି ବର୍ତ୍ତମାନ ମନ୍ଦିର ଅଛି, ସେଟା ଗୋଟିଏ ବଡ଼ ଆମ୍ବ ତୋଟା ଥିଲା। ସେ ଆମ୍ବ ତୋଟାରେ ଗୋଟେ ବଡ଼ ବିନୁଆଁ ଥିଲା। ସଂଧ୍ୟା ପାଞ୍ଚଟା ଛଅଟା ହୋଇଗଲେ, ଯଦି ଅନ୍ଧାର ହୋଇଯାଏ, ସେତେବେଳେ ଗୋଟିଏ କୌଣସି ପ୍ରେତାତ୍ମା, ସେ ରାସ୍ତା କଡ଼ରେ ଯାଇ ବସିଦିଏ। ତାକୁ ଲୋକ ଦେଖିଛନ୍ତି। ଏଠି ବୁଢ଼ା ବୁଢ଼ା ଲୋକମାନେ ଅଛନ୍ତି, ସେମାନେ ପ୍ରତ୍ୟକ୍ଷ ଦେଖିଛନ୍ତି। ଆଉ ଭୟରେ ସେଠିକି ଯିବା ଆସିବା କରୁ ନଥିଲେ। ସେତେବେଳେ ପୂଜକ ଥିଲେ, ବ୍ରଜମୋହନ ନାଏକ। ତାଙ୍କୁ ଯାଇ ଅନୁରୋଧ କଲେ, ଏଠି ପୂଜାପାଠ ହେଉଛି; ତୁମ ଘର ଅଛି ଆଉ ଦେବତା ବି ଅଛନ୍ତି ସ୍ୱୟଂ

ଚଳନ୍ତି ପ୍ରତିମା ଭଳିଆ। ଆଉ ତାଙ୍କୁ କୌଣସି ହିସାବରେ ବନ୍ଦ କରିଦିଅ। ସେ ଦେବତାଙ୍କୁ ଛାଡି ଦେଲେ, ଦେବତା ଆସି କରି ସେଠି ଯେଉଁ ବୁଲି ଦେଲେ, ସେଇ ଦିନଠୁଁ ସେ ପ୍ରେତାତ୍ମା ଆଉ ଦେଖା ଦେଇ ନ ଥିଲା।

– ଆଉ ଆମ ଦେଖିବା ସମୟରେ ଯେଉଁଠି ଦିଅଁ ରହୁଥିଲେ, ତାଙ୍କର ଘରର ଚତୁଃପାର୍ଶ୍ୱରେ ଆକୁଳ ଗଛ ବୋଲି ଗୋଟିଏ କଣ୍ଟାଗଛ ହେଉଥିଲା। ସେ ବାଇଡ଼ଙ୍କ ବୋଲି କି ଗୋଟେ ଯେଉଁ କୁଣ୍ଡାଏ ସେଟାବି ହେଉଥିଲା। ସେଇ ମଧ୍ୟ ଦେଇ କରି ଲୋକ ବୋହି ଆସୁଥିବାର ଆମେ ନିଜେ ଦେଖିଛୁ ଆଖିରେ। କିନ୍ତୁ କାହାକୁ କେବେ କୁଣ୍ଡେଇ ହେବାର ବା କାହା ପାଦରେ କଣ୍ଟା ଗଳିବା ଦେଖିନୁ।

– ଜଗନ୍ନାଥ ଯେମିତି ନବ କଳେବର ହୁଅନ୍ତି, ଏ' ଦିଅଁଙ୍କର ମଧ୍ୟ ନବକଳେବର ହୁଏ। କିନ୍ତୁ ତାଙ୍କର ନବ କଳେବରରେ କାଠଟା ପରିବର୍ତ୍ତନ ହୁଏ ନାହିଁ। ତାଙ୍କର ପଇତାଟା ପରିବର୍ତ୍ତନ ହୁଏ। ଯାହାକୁ ଶିଆଳି ଲହ କୁହାଯାଏ। କାରଣ ଯେତେବେଳେ ଶବର ଶତାଧାନ କଲେ, ଶ୍ରୀକୃଷ୍ଣ ସେତେବେଳେ ଶିଆଳି ଲତାରୁ ଝୁଲୁ ଥିଲେ, ଆଉ ଏମାନେ ଯେତେବେଳେ ପାଇଲେ, ସେତେବେଳେ ଶିଆଳି ଲତାରେ ପାଇଛନ୍ତି। ତେଣୁ ସେମାନେ ବର୍ଷକୁ ଥରେ ବାଲି ତୃତୀୟାରେ ଆମ ପାଖରେ ଥିବା ମହାବୀର ପାହାଡ଼କୁ ଯାଇକି ଶିଆଳି ଲତା ସଂଗ୍ରହ କରନ୍ତି। ନୂଆ କାଠ ଇତ୍ୟାଦି ସଂଗ୍ରହ କରି ଆଣି କି ତାଙ୍କର ପଇତା ପରିବର୍ତ୍ତନ କରନ୍ତି।

ବର୍ଣ୍ଣନା :–

– ଗଣ୍ଡ ସଂପ୍ରଦାୟର ଆରାଧ୍ୟ ଦେବତା ଜଂଘାଦେବଙ୍କ ବାର୍ଷିକ ଉତ୍ସବରେ ବିଭିନ୍ନ ସଂପ୍ରଦାୟର ଜନସାଧାରଣ କିଭଳି ସହଯୋଗ କରିଥାଆନ୍ତି, ସେ ସଂପର୍କରେ ଆମକୁ ସୂଚନା

ଦିଅନ୍ତି–ଭୋଇପାଲିର ବରିଷ୍ଠ ନାଗରିକ ଶ୍ରୀ ଗଙ୍ଗାଧର ପଟେଲ।

**ସାକ୍ଷାତ୍‌କାର – ଶ୍ରୀ ଗଙ୍ଗାଧର ପଟେଲଙ୍କ ସହ :**

ଗଡ଼ପୋଷ ଗାଁର ସେ ଜଣେ ଇଞ୍ଜିନିୟର, ଚାନ୍ଦା ଭେଦା ଜାତି ସମାଜରୁ କରିକି ଏଇ ମନ୍ଦିରଟା ତିଆରି କରିଛନ୍ତି। ଯେତେବେଳେ ବାର୍ଷିକ ପୂଜା ହୁଏ, ଶାମ୍ଭ ଦଶମୀ ଦିନ; ଆମ ଗାଁ ତରଫରୁ ପିଲାମାନେ ସହଯୋଗ କରନ୍ତି। ଆଉ ରାତିରେ ଗୋଟିଏ ସାଂସ୍କୃତିକ କାର୍ଯ୍ୟକ୍ରମ ହୁଏ, ସେଥିରେ ଗାଁର ସମସ୍ତ ପିଲା ଅନ୍ୟାନ୍ୟ ଜାତିର ପିଲାମାନେ ମଧ୍ୟ କିଛି ନାଟ, ଗୀତା, ଭାଗବତ ଇତ୍ୟାଦି କରନ୍ତି। ଆଉ ଲୋକମାନେ ଦେଖି ଖୁସି ହୁଅନ୍ତି। ପର୍ବ ପର୍ବାଣୀରେ ଗାଁର ଲୋକମାନେ ମଧ୍ୟ ସାହାଯ୍ୟ କରନ୍ତି। ଆଉ ଦେବତାଙ୍କୁ ନେଲାବେଳେ ଖାଲି ଗଣ୍ଡଲୋକ ବୋହିବେ, ତାହା ନୁହେଁ। ଯେକୌଣସି ଲୋକ ଇଚ୍ଛା କଲେ, ତାଙ୍କୁ କାନ୍ଧେଇ ନେଇପାରେ।

**ବର୍ଣ୍ଣନା :–**

– ରାଜକୃପା ଫଳରେ ଅନେକ ଅନାମଧେୟ ଏବଂ ଅର୍ବାଚୀନ ଦେବସ୍ଥାନ ପର୍ଯ୍ୟଟନ କ୍ଷେତ୍ରରେ ପରିଣତ ହୋଇଥାଏ।

– ପୁଣି ରାଜ ଦୃଷ୍ଟି ବିନା–ଅନେକ କିମ୍ବଦନ୍ତୀର ନାୟକ ବିଲୀନ ହୋଇଯାଆନ୍ତି, ବିସ୍ମୃତି ଗର୍ଭରେ।

– ଗଣ୍ଡ ସଂପ୍ରଦାୟର ଆରାଧ୍ୟ ଦେବତା ଜଂଘା ଦେବଙ୍କ କାହାଣୀ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅନୁରୂପ ହୋଇଥିଲେ ମଧ୍ୟ ପ୍ରଚାର–ପ୍ରସାର ତଥା ଉପଯୁକ୍ତ ରକ୍ଷଣା ବେକ୍ଷଣ ଅଭାବରୁ ଜଂଘାଦେବ ଆଜି କେବଳ ନିର୍ଦ୍ଦିଷ୍ଟ ସଂପ୍ରଦାୟର ତଥା ନିର୍ଦ୍ଦିଷ୍ଟ ଅଞ୍ଚଳର ଦେବତା ହୋଇ ରହି ଯାଇଛନ୍ତି।



গীত :

ଜୟ ଜଗତର ନାଥ, ଜୟ ଜଂଘାଦେବ,
ଜୟ ବନବାସୀ ଅବତାର ବଡ଼ଦେବ ।।୦।।

ରହିଛ ଗୁପତେ ପ୍ରଭୁ ଭୋଇପାଲି ବନେ,
ଲକ୍ଷେ ଯୋଜନରୁ ଭକ୍ତ ଡାକ ଶୁଣ କାନେ ।
ଶିଆଳି ଲତାରେ ତୁମ ରହିଥାଏ ଭାବ ।।୧।।

ଦ୍ୱାପର ଯୁଗର କୃଷ୍ଣ ବ୍ରହ୍ମ ଜଗନ୍ନାଥ ,
ଆନ ବ୍ରହ୍ମ ଜଂଘ ରୂପେ ପ୍ରଭୁ ବିରାଜିତ ।
ମହାବୀର ପର୍ବତରେ ବିଜେ ବଡ଼ ଦେବ ।।୨।।

ଭକତର ଡାକ ଶୁଣି ହେଉଛ ବାହାର,
ବୁଲି ବୁଲି ପୂଜା ପାଅ ଜଗତ ଠାକୁର ।
ତୁମ ମହିମାର ସୀମା କେ' କରିବ ଠାବ ।।୩।।



**ଜୟ ଜଂଘାଦେବ, ଜୟ ଲିଂଗାଦେବ**
**ଜୟ ବଡ଼ଦେବ ।।**



**ଏହି ଲେଖକଙ୍କର ଆଉ କେତୋଟି ଉପାଦେୟ ଶିଶୁ ସାହିତ୍ୟ ପୁସ୍ତକ ଅବଶ୍ୟ ସଂଗ୍ରହଣୀୟ**

- ଆସ ନାଟକ କରିବା – ଶିଶୁ ନାଟକ
- ବଣ ଭୋଜି – ଶିଶୁ ଉପନ୍ୟାସ
- ଫୁଲ ସବୁ ଫୁଟିଲେ – ଶିଶୁ ଗୀତିକଥା
- କିଏ ରେ ତୁହି କିଏ – ଶିଶୁ ଗୀତିକଥା
- ଚନ୍ଦନ–ଚକୁଳି – ଶିଶୁ ଉପନ୍ୟାସ
- ସର୍ବଜ୍ଞ ମାନବ – ଶିଶୁ ବିଜ୍ଞାନ
- ଜାଦୁକର – ଶିଶୁ ଉପନ୍ୟାସ
- ବଜ୍ର ପୁରୁଷ ବାଜପେୟୀ – ଶିଶୁ ଜୀବନୀ

ପ୍ରତ୍ୟେକର ମୂଲ୍ୟ ଦଶଟଙ୍କା । ରିହାତି ମୂଲ୍ୟରେ ଛାତ୍ର–ଛାତ୍ରୀମାନଙ୍କୁ ଯୋଗାଇ ଦିଆଯାଏ ।

ଯୋଗାଯୋଗ :
ପରିଚାଳକ, ଅରୁଣ–ତରୁଣ, ଆକାଶବାଣୀ ମାର୍ଗ,
ଜଗଦା, ରାଉରକେଲା – ୭୬୯ ୦୪୨,
ଫୋନ – ୫୭୦୩୯୬

